

# ମୋ ବାଇଧନ

ଯାଅ ବାଇଧନ ମୋର
ଭାଇ ଭଉଣୀଙ୍କି କହିବୁ ତୋର, ମୋ ବାଇଧନ
ଲଗିଲା ପ୍ରଭୁଙ୍କ ଡୋର ।

ପରିମାର୍ଜିତ ଷଷ୍ଠ ସଂସ୍କରଣ


ରାୟ ସାହେବ
**କୃଷ୍ଣ ଚନ୍ଦ୍ର ସେନଗୁପ୍ତ**
ଏମ୍. ଏ., ବି. ଇଡ୍.



ମୂଲ୍ୟ ୦ ୦ /୬ ମାତ୍ର

# ଉତ୍ସର୍ଗପତ୍ର

ଓଁ ନମୋ ଭଗବତେ ଶ୍ରୀ ରାମକୃଷ୍ଣାୟ

ଶ୍ରୀମାନ୍ ବ୍ରଜବନ୍ଧୁ ଦାଶ, ଶ୍ରଦ୍ଧାସ୍ପଦେଷୁ

ସୁନାଖଣ୍ଡି । କଟକ ।

ଭାଇ ବ୍ରଜବନ୍ଧୁ,

ବାଲ୍ୟକାଳରେ ମୋ ପାଖରେ ବସି ଶୁକପକ୍ଷୀ କାନ ଡେରିଁ ରାଧାକୃଷ୍ଣ ନାମ ଶୁଣିବା ପରି ତୁମ୍ଭେ ଯେ ରାମକୃଷ୍ଣ-କଥା ଶୁଣୁଥିଲ ଏବଂ ତାହା ଶୁଣିବାଦ୍ୱାରା ତୁମ୍ଭର ଯେ ଆକୃତିପ୍ରକୃତିଗତ ପବିତ୍ରତା ସୁନ୍ଦରରୂପେ ପ୍ରତିଭାତ ହୋଇଥିଲ, ସେ ମଧୁର ସମୟ ଏବଂ ତୁମ୍ଭର ସେ ପବିତ୍ର କାନ୍ତିର ସ୍ମୃତି ଜୀବନରେ ଆଉ ଭୁଲି ପାରିବି ନାହିଁ । ସେ ମଧୁର ଅଥଚ ପବିତ୍ର ସ୍ମୃତିକ କ ଉପହାର ଦେବି ଖୋଜି ପାଉ ନଥିଲି । ଆଜି ପ୍ରଭୁଙ୍କର ଉପଦେଶ କତିପୟ ପଦ୍ୟାକାରରେ ପ୍ରକାଶ କରି ତୁମ୍ଭ ହସ୍ତରେ ଏହି ଉପଦେଶ-ପ୍ରସାଦ ସମର୍ପଣ କଲି । ତୁମ୍ଭେ ଏହାକୁ ନିଜେ ଗ୍ରହଣ କରି ଉତ୍କଳର ଭାଇ ଭଉଣୀଙ୍କୁ ବିତରଣ କର—ତୁମ୍ଭେ ଯେପରି ବିଶୁଦ୍ଧ ନନ୍ଦ ଅନୁଭବ କରୁଥିଲ, ସେମାନେ ମଧ୍ୟ ସେ ଆନନ୍ଦ ପ୍ରାଣଭରି ସମ୍ଭୋଗ କରନ୍ତୁ, ମୋର ଏତିକି ପ୍ରାଣର ଆକାଙ୍କ୍ଷା ।

୨୨।୧୦।୧୨
ସାହେବଯାଦା ବଜାର,
କଟକ

କର୍ମଧିକମିତ
ତୁମ୍ଭର
ଚିରସ୍ନେହାବଦ୍ଧ
କୃଷ୍ଣଚନ୍ଦ୍ର

ଓଁ ନମୋ ଭଗବତେ ଶ୍ରୀ ରାମକୃଷ୍ଣାୟ ।

# ମୋ ବାଇଧନ

(ଶ୍ରୀ ରାମକୃଷ୍ଣ ଉପଦେଶ ସଙ୍ଗୀତ)

ରଜନୀରେ ତାରାଗଣ
ଗୋଟି ଗୋଟି ହୋଇ ଶୋଭେ ଗଗନ ମୋ ବାଇଧନ
ସୂର୍ଯ୍ୟ ତେଜଁ ଅଦର୍ଶନ ।



ଦିନରେ ନ ଦେଖୁ ବୋଲି
ନାହିଁ କି ଗଗନେ ତାରକାମାଳି ମୋ ବାଇଧନ
ହେବ ଥିବା ସେହି ଭଳି ।



ଦୂରବୀଣ ଯନ୍ତ୍ର ନେଇ
ଦେଖିଲେ ଦିନରେ ତାରା ଦିଶଇ ମୋ ବାଇଧନ
ଦେଖ ତାଙ୍କୁ ଭକ୍ତି ଦେଇ ।



ଜଳ ଜନ୍ତଙ୍କୁ ଦେଖ
ଭିନେ ଜାତି ଭିନେ ନାମରେ ଡାକ ମୋ ବାଇଧନ
ପାନି, ପାଣି, ଜଳ ଏକ ।



ସେହି ଭଳି ଏକ ହରି
ଆଲ୍ଲା, କୃଷ୍ଣ, ଖ୍ରୀଷ୍ଟ ନାମ ତାଙ୍କର ମୋ ବାଇଧନ
ନାମେ କିପାଁ ମରାମରି !



ଲୁଚକାଳି ଖେଳ ବେଳେ
ଚୋର ହୋଇ ବୁଲୁ ଥାଆନ୍ତି ପିଲେ ମୋ ବାଇଧନ
ଶେଷ ବୁଢ଼ୀକି ଛୁଇଁଲେ ।



ଯେ ଭବ-ପୟୋଧି ଥରେ
ହରିପାଦପଦ୍ମ ପରଶ କରେ ମୋ ବାଇଧନ
ଦୁଃଖ ଦୁର୍ଦ୍ଦଶାରୁ ତରେ ।



ଛୁଇଁଲେ ପରଶ-ମଣି
ଲୁହା ହୋଇଯାଏ ସୁନା ସେଷଣି ମୋ ବାଇଧନ
ଲୁହା ହୁଏ କି ସେ ପୁଣି ?



ବନ୍ଧୁ ପାଦପଦ୍ମ ବେନ
ଛୁଇଁଛୁ ଯେ ଥରେ ହୃଦୟ ଦେହ ମୋ ବାଇଧନ
ଭ୍ରମେ ନ ପଡ଼େ ସେ ଧର୍ମ ।



ଲୁହାର ଯେ ତରବାର
ପରଶ-ମଣିକ ଛୁଇଁଲେ ତାର, ମୋ ବାଇଧନ,
ରହିଯାଏ କି ଆକାର ?



ସେହିପରି ତ ଭକତେ
ବନ୍ଧୁ ଦରଶନ ପାଇଲେ ଯେତେ ମୋ ବାଇଧନ
ଆକାର ଥିବ କେମନ୍ତେ ?



ଦୁଧ ସଙ୍ଗେ ପାଣି ମିଶେ
ଦୁଧରୁ ଲହୁଣୀ ହୋଇଲେ କି ସେ ମୋ ବାଇଧନ
ପାଣିରେ ମିଶିବା ଦଶେ ?



ସଂସାରେ ଜଡ଼ିତ ଦେହୀ
ବନ୍ଧୁ ଦରଶନ ହେଲେ କି କେହି ମୋ ବାଇଧନ
ସଂସାରେ ମିଶଇ ସେହି ?



ସିଦ୍ଧ ଅଟେ କେଉଁ ଜନ ?
କୋମଳ ଅଟଇ ଯାହାର ମନ ମୋ ବାଇଧନ
ସେହେତୁ ସିଦ୍ଧ ବାଇଗଣ ।



ଲାଉ କଖାରୁ ଗଛରେ
ଆଗେ ଫଳ ହୁଏ ଫୁଲ ପଛରେ ମୋ ବାଇଧନ
ଏ କଥା ମନେ କଛ ରେ ।



ନିତ୍ୟ ସିଦ୍ଧ ନରନାରୀ
ସାଧନ କରନ୍ତି ଦର୍ଶନ ସାରି ମୋ ବାଇଧନ
ହୁଅନ୍ତି ସଂସାରୁ ପାରି ।



ହାଟ ପାଖୁଁ ଦୂରେ ଥିଲେ
ହୋ ହୋ ରବେ କାନ ଅତଡ଼ା ପଡ଼େ ମୋ ବାଇଧନ
ହାଟେ ସବୁ ତତ୍ତ୍ୱ ମିଳେ ।



ହରିଙ୍କଠୁଁ ଥିଲେ ଦୂରେ
କଳି କଳଆଳେ ମଣିଷ ଭୁଲେ ମୋ ବାଇଧନ
ତ କୁଂ ଦେଖିଲେ ସୁଧୁରେ ।



ନଶୁଣୀ, ବାଉଁଶ, ନଇ
ଛାତ ଉପରକୁ ବାଟ ଅଟଇ ମୋ ବାଇଧନ
ଧର୍ମଯାକ ବାଟ କହୁ ।



ପିଲା ଝିଲା ଦିନ ରାତି
ଖେଳନା ସଙ୍ଗତେ ରହୁଲେ ମାତି ମୋ ବାଇଧନ
ତେବେ ମା ପାଏ ଶୁଆନ୍ତି ।



ଯେବେ ପୁଣି କେଉଁ ପିଲା
ଖେଳବା ଦରବ ଫୋପାଡ଼ି ଦେଲା ମୋ ବାଇଧନ
'ବୋଉ ଲୋ' ବୋଲି ଡାକିଲା ।



ବୋଉ ତ ଆସଇ ଧାଇଁ
ରନ୍ଧା ବଢ଼ା କାମ ଦେଇ ପକାଇ ମୋ ବାଇଧନ
ପିଲା କାନ୍ଦଣା ନ ସହୁ ।



ସେହିପରି ଯେ ଭକତ
ଧନ ମାନ ଯଶେ ନ ହୋଇ ମତ୍ତ ମୋ ବାଇଧନ
ଠାକୁର ଧିଆନେ ରତ ;



ଭକତ କାନ୍ଦଣା ଶୁଣି
ସ୍ୱବଗ୍ରାହୀ ଦଣ୍ଡେ ଥାନ୍ତି କି ପୁଣି ମୋ ବାଇଧନ
ସତ୍ୱରେ କରନ୍ତି ଭୂନ ।



ସର୍ବତ୍ର ସେ ବିଦ୍ୟମାନ
ତେବେ କାହିଁ ଦେଖା ନ ଯାନ୍ତି ଜାଣ ମୋ ବାଇଧନ
ଶୁଣ ତାହାର କାରଣ ।



ଦଳପୁରୀ ସେ ପୋଖରୀ
ଜଣା ପଡ଼େ ପାଣି ନ ଥିବା ପରି ମୋ ବାଇଧନ
ଦଳ ଅଲଗା ନ କରି ।



ମାୟାବୁଡ଼ା ଆଖି ନେଇ
ଦେଖିଲେ ଦର୍ଶନ ହୁଏ କି ସେହି ମୋ ବାଇଧନ
ଦେଖ ମାୟା ଠେଲିଦେଇ ।



ହଜାର ବରଷ ଯାଏ
ଯେଉଁ ଘରମଧ୍ୟେ ଅନ୍ଧାର ଥାଏ ମୋ ବାଇଧନ
କ୍ଷଣକେ ଆଲୁଅ ପାଏ ।



ସହସ୍ର ଜନ୍ମର ପାପ
ଈଶ୍ୱରଙ୍କୁ ଥରେ ଡାକଲେ ବାପ ମୋ ବାଇଧନ
ଭୁଲିଯାଏ ସବୁ ତାପ ।



ତାହାଙ୍କୁ ଦେଖିବା ପାଇଁ
କାନ୍ଦେ ଯେ ସତତ ବ୍ୟାକୁଳ ହୋଇ ମୋ ବାଇଧନ
ଶ୍ରୀଗୁରୁ ମିଳନ୍ତି ଯାଇ ।



ତକିଆର ଖୋଳମାନ
କଳା ଧଳା ନେଳ କେ ବଡ଼ ସାନ ମୋ ବାଇଧନ
ସବୁଠିଁ ତୁଳା ସମାନ ।



ମଣିଷ ତକିଆ ଖୋଳ
କଳା ଗୋରା ସାଧୁ ଅସାଧୁ ବୋଲ ମୋ ବାଇଧନ
ଈଶ୍ୱର ପୂର୍ଣ୍ଣ ସକଳ ।



ସବୁ ପାଣି ନାରାୟଣ
ତେଣୁ ଯେ-ସେ ପାଣି କରୁକ ପାନ ମୋ ବାଇଧନ
ବାଛୁର କରୁ ଗ୍ରହଣ ।



ସବୁଠି ହରି ପ୍ରକାଶ
ଯିବୁ କି ତେଣୁ ତୁ ସବଙ୍କ ପାଶ ? ମୋ ବାଇଧନ
ଗଲେ ହେବୁଟି ନିରାଶ ।



ବାଘ ମଧ୍ୟେ ହରି ଛନ୍ତି
ଯାଏ କିଏ ତେଣୁ ବାଘର କତି ମୋ ବାଇଧନ
କୁସଙ୍ଗ ଜାଣ ସେମନ୍ତି ।



ଦାନ କରିବା କି ଭଲ
ସୁଅ ଆଗେ ତାର ନ ଥାଏ କଳ ମୋ ବାଇଧନ
ପଙ୍ଗୁ ପୋଷଣରେ ବଳ ।



ହରିଙ୍କି ଦେଖିବା ଲାଗି
ଯେ ଭକତ କାନ୍ଦେ କରୁଣା ମାଗି ମୋ ବାଇଧନ
ଦାନ ଯାଏ ତାର ଭାଙ୍ଗି ।



ବେଦ, କୋରାଣ, ପୁରାଣ
ସମସ୍ତ ଅଇଣ୍ଠା କଲେଣି ଜନ ମୋ ବାଇଧନ
କେ ଜାଣେ ବ୍ରହ୍ମ କେସନ ?



ମେଘ ସୂର୍ଯ୍ୟଙ୍କୁ ଘୋଟିଲେ
ସୂର୍ଯ୍ୟ ଆଉ ଦେଖା ନ ଯାନ୍ତି ତଳେ ମୋ ବାଇଧନ
ଝିଟକନ୍ତି ମେଘ ଗଲେ ।



ଈଶ୍ୱରଙ୍କୁ ସେହିପରି
ଜୀବ ଦେଖୁନାହିଁ ମାୟାରେ ପଡ଼ି ମୋ ବାଇଧନ
ଦେଖ ମାୟା ପରିହରି ।



ଭକ୍ତ ଭଗବାନ ପାଇଁ
ଚଢଇ ଗୁଡ଼ି ସବୁ ଯାଏ ପଳାଇ ମୋ ବାଇଧନ
କି ହେତୁ କହେଁ ଫିଟାଇ ।



ଆଲୁଅ ଦେଖିଲେ ଥରେ
ପତଙ୍ଗ ଦଉଡ଼ି ଆସଇ ଖରେ ମୋ ବାଇଧନ
ଅନ୍ଧାରେ ମନ ନ ଧରେ ।



ନଆଁରେ ମରଇ ପୋଡ଼ି
ତେବେକେ ଆଲୁଅ ନ ପାରେ ଛାଡ଼ି ମୋ ବାଇଧନ
ଗୁଡ଼େ ଯେସନେ ପିମ୍ପୁଡ଼ି ।



ଭକତ ପ୍ରଭୁ ଦେଖିଲେ
ପ୍ରାଣର ମମତା ରଖିଲ କ ରେ ? ମୋ ବାଇଧନ
ସମର୍ପେ ପ୍ରାଣ ଅଚରେ ।



ବଡ଼ଲୋକ ଗୃକରାଣୀ
ଖାମିନ୍ଦର ପିଲପିଲିଙ୍କି ଆଣି ମୋ ବାଇଧନ
ନିଜ ପିଲ୍ ଭୁଲେ ମାନ ।



ମନରେ ଜାଣେ ମାଏକ
ଅଛନ୍ତ ମୋ ଘର୍ରେ ମୋ ପିଲ୍ତକ ମୋ ବାଇଧନ
ଏବେ ତା’ ମନ ପରଖ ।



ସେହ୍ନିପରି ଏ ଜଗତେ
ପିଲ୍ ମାଇପଙ୍କୁ ନେଇ ସଙ୍ଗତେ ମୋ ବାଇଧନ
ପାନ୍ତୁଥିବୁ ନିଜ ମତେ ।



ମାଏ ଜାଣୁଥିବୁ ମନେ
ଯେଝା କର୍ମ ଯେମନ ଜଣକୁ ଜଣେ ମୋ ବାଇଧନ
ଅଛନ୍ତି ଭବ-ଭବନେ ।



ସଂସାର ଈଶ୍ୱର ତୁହେଁ
ଏକମନେ ଅବା କପଟ ରହେ ମୋ ବାଇଧନ
ମରମ ବସ୍ତାର କହେଁ ।



ଚୂଡ଼ା କୁଟା ହେବାବେଳେ
କେଉଠୁଣି କୋଳେ ପିଲଟି ଖେଳେ ମୋ ବାଇଧନ
ସ୍ତନ ସେ ପିଆଏ ହେଲେ ।



ଚୂଡ଼ାର ହିସାବ ପୁଣି
ଗର୍ହାକ ସହିତ କରେ ସେକ୍ଷୁଣି ମୋ ବାଇଧନ
ଶୁକାଏ ଚୂଡ଼ା ତରୁଣୀ ।



ନାନା କରମରେ ମନ
ଢେଙ୍କି ପାହାରକୁ କ ସାବଧାନ ମୋ ବାଇଧନ
ହାତ. ଉପରେ ନଶାଣ ।



ଏ ଭବେ ଏସନ ଖ୍ଳ
ସବୁ କର୍ମ କରୁଥିବୁ ସମ୍ଭାଳି ମୋ ବାଇଧନ
ହରିପଦେ ପ୍ରାଣ ଢାଳି ।



ଈଶ୍ୱର ଧିଆନ ପାଇଁ
କଣେ ବନେ ମନ ଭ୍ରବବୁ ଯାଇ ମୋ ବାଇଧନ
ଏଥୁଁ ଭଲ ସ୍ଥାନ ନାହିଁ ।



ସମୁଦ୍ର ଅତଳ ଜଳେ
ଥରକେ ରତନ କେ ପାଏ ଭଲେ ? ମୋ ବାଇଧନ
ଥାଏ ତ ରତ୍ନ ସେ ଥଳେ ।



ପ୍ରଭୁଙ୍କ କୃପାସାଗରେ
ବୁଡ଼ମାର ମାତ୍ର ଦିଥର ଥରେ ମୋ ବାଇଧନ
ହତାଶ କପାଇଁ ନରେ ?



ଧୈର୍ଯ୍ୟ ଧରି ସେ ସାଗରେ
ବୁଡ଼ ମାରୁଥାଅ ଥରକୁ ଥରେ ମୋ ବାଇଧନ
ଭକ୍ତି ମିଳିବ ଶେଷରେ ।



'ଭାଙ୍ଗ' 'ଭାଙ୍ଗ' ମୁଖେ କହି
ଧାଇଁଲେ କି କେବେ ନିଶା ହୁଅଇ ? ମୋ ବାଇଧନ
ଘୋରି ପିଇବାର ବୃହି ।



'ଈଶ୍ୱର' 'ଈଶ୍ୱର' କରି
କେଉଁ କେବେ ପାଇଅଛି କି ହରି ? ମୋ ବାଇଧନ
ସାଧନା ମୂଳ ସବୁରି ।



ସାଧୁଏ ଧରନ୍ତି ଭେକ
ଏଥିରେ କି ଅଛି କାରଣ ଦେଖ ମୋ ବାଇଧନ
ବେଶରେ ମନର ଟେକ ।



ପିନ୍ଧି ଲୁଗା ପରିପାଟି
ସୁନ୍ଦର ଫିଗରି ମୁଣ୍ଡରେ କାଟି ମୋ ବାଇଧନ
ମନରେ ଯେ ଭାବନାଟି ।



ସାଧୁଙ୍କର ଭେକ ଧରି
ଗେରୁଆ ଲୁଗାରେ ଦେହ ଆବରି ମୋ ବାଇଧନ
ଆସେ କି ଭାବ ସେପରି ?



ଏ ହୃଦୟ-ସରୋବର
କାମନା-ବାୟୁରେ ହେଲେ ଚଞ୍ଚଳ ମୋ ବାଇଧନ
ଈଶ୍ୱର ଦେଖା ବିଫଳ ।



ବାଳୁଙ୍ଗା ସହସ୍ର ଅଙ୍କ
ପଡ଼ ଉଠୁଥାଏ ବାରକୁ ବାର ମୋ ବାଇଧନ
ଶେଷେ ଦେହ ଦମ୍ଭ ତାର ।



ସେହ୍ୱପର ଧର୍ମ ଗୃହେ
କେତେ ଥର ଝୁଣ୍ଟି ପଡ଼ିବ ବାଟେ ମୋ ବାଇଧନ
ପାର ହେବ ଧର୍ମ ଘାଟେ ।



ଯେଉଁଯାଏ ମହୁମାଛି
ଗୁଣୁଗୁଣି ବୁଲେ ଫୁଲକୁ ବାଛି ମୋ ବାଇଧନ
ପାଇନାହିଁ ମଧୁ କଛି ।



ଯେତେ ଦିନଯାଏ ମନ
ଏଣେ ତେଣେ ହେଉଥାଏ ଉଚ୍ଛନ୍ନ ମୋ ବାଇଧନ
ପାଇ ନାହିଁ ଭକ୍ତ ଧନ ।



କରୁଥିବୁ ସାଧୁ ସଙ୍ଗ
ଧର୍ମ ଅର୍ଜନର ପ୍ରଧାନ ଅଙ୍ଗ ମୋ ବାଇଧନ
ଉଠିବ ପ୍ରେମ-ତରଙ୍ଗ ।



ସମ୍ପୂର୍ଣ୍ଣ

Printer—L. Garabaru, Sree Radharaman Press,
Cuttack—1944